ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ — ୨

ମୁଦ୍ରକ : ତପନ କୁମାର ମହାପାତ୍ର
ଅପ୍ରତିମା (ଅଫ୍‌ସେଟ୍) ପ୍ରିଣ୍ଟସ୍, ସୂତାହାଟ, କଟକ - ୧

ପ୍ରଥମ ମୁଦ୍ରଣ ୧୯୯୪

ମୂଲ୍ୟ ଟ ୧୦.୦୦

## ସୂଚୀ



—

# ପରୋପକାର

ନିଜ ପାଣି ନଈ କେବେ ନିଜେ ପିଏନାହିଁ,
ପିଅନ୍ତି ମଣିଷ, ପଶୁ, ପକ୍ଷୀ, ଗୋରୁଗାଈ ।

ଗଛଲତା କେବେ ନଖାଆନ୍ତି ନିଜ ଫଳ,
ସବୁ ଜୀବ ଖାଇ ପାଇଥାନ୍ତି ତହୁଁ ବଳ ।

ଗାଈତ ଆପଣା ଦୁଧ ନକରଇ ପାନ,
ସବୁ ଶିଶୁ ପାଇଁ ତାହା କରିଦିଏ ଦାନ ।

ମହୁମାଛି ଫୁଲ ଦେହୁଁ ରସ ଆଣେ ବୋହି,
ପର ପାଇଁ ଯତନରେ ଦିଏ ତାହା ଥୋଇ ।

ନିଜେ ପୋଡ଼ି କାଠ ଦିଏ ଉତ୍ତାପ ଆଲୋକ,
କାଟି ତାକୁ କେତେ କାମେ ଲଗାନ୍ତି ଲୋକ ।

ଜନମାଇଁ ଶସ୍ୟ ତାହା ଖାଏ ନାହିଁ ମାଟି,
ପାଚିଗଲେ ଚାଷୀ ତାକୁ ଆଣିଥାଏ କାଟି ।

କରନ୍ତି ସାଧବ ସଦା ପରଉପକାର
ନହେଲେ କି ଦିନେ ଚଳିପାରନ୍ତା ସଂସାର !

—

## ଗ୍ରାମ ଚାଟଶାଳୀ

ମନେ ଅଛି ମୋର ଗ୍ରାମ ଚାଟଶାଳୀ
ଶିଖି ଥିଲି ଯହିଁ ଅକ୍ଷର ଆଗେ,
ସରୁ ଦାଣ୍ଡ କଡ଼େ ଚାଳଘର ଖଣ୍ଡି
ଯାଇଥିଲି ଦିନେ ବାପାଙ୍କ ସାଂଗେ।



ଡାକି ନେଇ ପାଶେ ବସାଇଲେ ଗୁରୁ
ପଚାରିଲେ ନାମ ଆଦରକରି,
ତିନିଗୋଟି ଶୂନ ଲେଖିଦେଲେ ତଳେ
ଖଡ଼ିମୁଣ୍ଡା ଏକ ହାତରେ ଧରି।

ତାହାରି ଉପରେ ବୁଲାଇଲି ଖଡ଼ି
ଅ ଆ କ ଖ ଶିଖିଲି ପାଠ,
ଭଲ ଗୁଣ ଲାଗି ପାଇଲି ପ୍ରଶଂସା
ମନ୍ଦ ପାଇଁ କେତେ ଖାଇଲି ଛାଟ।

ପଢ଼ିଲି ସାହିତ୍ୟ ଅଙ୍କ ଇତିହାସ
ଭୂଗୋଳ ବିଜ୍ଞାନ ଲାଗେ ନୂତନ,
ଜାଣିବାକୁ ବେଶୀ ଜାଗିଲା ଉତ୍ସାହ
ଶିଖିବାକୁ ବେଶୀ ବଳିଲା ମନ।

ପଢ଼ିବାକୁ ଯେତେ ପାଉଥିଲି ସୁଖ
ପରୀକ୍ଷା ଲାଗିଲା ସେତିକି ମନ୍ଦ,
ସବୁଠାରୁ ବେଶି ସୁଖ ଲାଗିଥିଲା
ସେଦିନର ସାଥୀ ଖେଳ ଆନନ୍ଦ।

ସୁଖ ଲାଗିଥିଲା ବସନ୍ତ ପଞ୍ଚମୀ
ହରିତାଳିକାର ପୂଜା ଉତ୍ସବ,
ଗ୍ରାମ ଚାଟଶାଳୀ ଗୁରୁ ସହପାଠୀ
ଥିଲେ ସେ ମୋହର ମହାବିଭବ।

ଗ୍ରୀଷମ ଖରାରେ ବୁଡ଼ିଥିଲି କେତେ
ପଧାନ ପୋଖରୀ ଭିତରେ ଯାଇ,
କେତେ କାହିଁ ବୁଲି ତୋଟା ବଗିଚାରେ
ଜାମୁ ବରକୋଳି ଆସିଛି ଖାଇ।

ଶୀତ ସକାଳରେ ଚାହାଳୀ ଦୁଆରେ
ଖରାତଳେ ବସି କଷିଛି ଅଙ୍କ,

ବରଷା ସଞ୍ଜରେ ଫେରିଛି ଘରକୁ
ଗାଆଁ ଦାଣ୍ଡେ ମାଡ଼ି କାଦୁଅ ପଙ୍କ ।

ଗୁରୁ ସହପାଠୀ କେ ଗଲେଣି କାହିଁ
ଗୋଟି ଗୋଟି ତାହା ପଡୁଛି ମନେ,
ବୁଲିଥିଲି କେଉଁ ବିଲ ପାହାଡ଼ରେ
ଖେଳିଥିଲି ଆମ୍ବ ପୁଲାଙ୍ଗ ବନେ ।



ମନ୍ଦିର ସମାନ ଗ୍ରାମ ଚାଟଶାଳୀ
ସବୁ ସ୍ମୃତି ପରେ ଟେକିଛି ମଥା,
ଶିଖିଥିଲି ଯହିଁ ପ୍ରଥମ ଅକ୍ଷର
ପଢ଼ିଥିଲି ଯହିଁ ପ୍ରଥମ କଥା ।

—

# ଲଙ୍ଗଳ

ଗ୍ରାମର ବଢ଼େଇ ବାରସୀ ଦାଢ଼ରେ
ଗଢ଼ଇ ଲଙ୍ଗଳ ଗୋଟି,
ଝାଳ ଗମଗମ ଦେହଯାକ ତା'ର
ଶୋଷରେ ଶୁଖଇ ତୋଟି।

ଶାଳରେ କମାର ତତାଇ ଲୁହାକୁ
କରେ ଟହଟହ ନାଲି,
ଉପରକୁ ଟେକି ପିଟଇ ହାତୁଡ଼ି
ତାତିରେ ଦେହକୁ ଜାଳି।

କାଠ ଲଙ୍ଗଳରେ ଲୁହାଫାଳ ଯୋଡ଼ି
ଶିଶୁ ପରି ହସି ହସି,
ନିଦାଘ, ବରଷା, ଶରତ, ବସନ୍ତେ
ଚଳେ ଚଷା ବିଲ ଚଷି।

ପୃଥିବୀର ଏହି ଆଦିମ ଯନ୍ତ୍ରଟି
ଗଢ଼ିଥିଲା ଯେବେ ନର,
ନଥିଲା ସେ କାଳେ କଳ କାରଖାନା
ବଡ଼ ବଡ଼ କୋଠାଘର।

ନଥିଲା ଜାହାଜ ରେଳ ବ୍ୟୋମଯାନ
ବିଜୁଳି ବନ୍ଧୁକ ଗୁଳି,
ଖାଦ୍ୟ ଅନ୍ୱେଷଣ କରୁଥିଲା ନର
ବଣ ପାହାଡ଼ରେ ବୁଲି।

ସେ କାଳ ଲଙ୍ଗଳ ଅଛି ଆଜିଯାଏ
ସେହି କାଳୁଁ ଭୂମି ତାଡ଼ି,
ଶସ୍ୟରେ ଶ୍ୟାମଳ କରୁଛି ଧରାକୁ
ଆଣୁଛି ଆହାର କାଢ଼ି।



ନିର୍ମାଣ ତାହାର ହେଲେହେଁ ସହଜ
ହେଲେ ତା' ଅଳପ ମୂଲ୍ୟ,
ଆଉ କେଉଁ ବସ୍ତୁ କରଇ କହ ତ
ଉପକାର ତାହା ତୁଲ୍ୟ ?

ପିନ୍ଧିବା ପାଇଁ ବା ଶୀତ ନିବାରିବା
ଲାଗି ଲୋଡ଼ା ଯେତେ ବାସ,
ତାହାପାଇଁ ତୁଳା ମିଳିଥାଏ ସିନା
କରିବାରୁ କପା ଚାଷ।

ଆହାର ବସନ ଯୋଗାଉଛି ଯେହୁ
ହେଳ ତା'ର ମହାଗୁଣ,
କୋଟି ସଂପଦର ମୂଳରେ ନିହିତ
ସାମାନ୍ୟ ଲଙ୍ଗଳ ମୁନ।

କ୍ଷୁଦ୍ର ଧନହୀନ ହୁଅ ପଛେ ତୁମ୍ଭେ
କରିପାର ମହାକର୍ମ,
ଭୂମି-ରୂପ ଗ୍ରନ୍ଥେ ଲଙ୍ଗଳଲେଖନୀ
ବଖାଣୁଛି ଏହି ମର୍ମ।

## ଭଲପିଲା

ହସ ହସ ମୁହଁ ତା'ର ଦେହ ସଫା ସୁତୁରା,
କାନମୂଳେ ବେକତଳେ ଲାଗେ ନାହିଁ କୋତରା।

ନଖ ଦିଶେ ଜକଜକ ଦାନ୍ତକେଡେ ଉଜ୍ଜ୍ୱଳ,
କଳା କଳା ଡୋଳା ଦୁଇ ଫୁଲ ପରି ସୁଢ଼ଳ।

ସେହି ପିଲାଟିକି ଦେଖି ଭାରି ଖୁସି ଲାଗଇ,
ଶାନ୍ତ ଓ ସୁଧାର ସେହୁ ସତ କଥା କହଇ।

ବଡ଼ି ସକାଳରୁ ଉଠି ହାତ ମୁହଁ ଧୁଅଇ
ଖାଇବାକୁ ଯାହା ଦିଅ ଅବୁଝା ସେ ନୁହଇ।

ଦୋଷ ଯେବେ କରେ ସେହୁ, ମାଆ କଲେ ଆକଟ,
ଚଳେ ତାଙ୍କ କଥା ମାନି ହୁଏ ନାହିଁ ଅଝଟ।

ଅକାରଣେ ତିନ୍ତେ ନାହିଁ     ବରଷାର ଧାରାରେ,
ନବୁଲଇ କେବେହେଲେ     ଦି'ପହର ଖରାରେ ।

ମହୁମାଛି ପରି ସଦା     ଲାଗିଥାଏ କାମରେ,
ନକହେ ସେ ମିଛ କଥା     ପଦେ କାହା ନାମରେ ।



ଟିକେ ହେଲେ କରେନାହିଁ     ଲୋଭ କାହା ଦରବେ,
ତାହା ସଙ୍ଗେ କଥା କହି     ସୁଖ ପାଆନ୍ତି ସରବେ ।

ଖାଇବା ଆଗରୁ ନିତି     ସରିଥାଏ ଗାଧୁଆ,
ଭାଇଭଉଣୀଙ୍କ ପାଖେ     ହୁଏ ନାହିଁ ବାହୁଆ ।

ଶୋଇବା ବେଳରେ ଶୁଏ ଖେଳବେଳେ ଖେଳଇ,
ଚାଟଶାଳୀ ବେଳ ହେଲେ ପୋଥି ଜାକି ଚଳଇ ।

ସାଥି ମେଳେ କେବେହେଲେ ନଦେଖାଏ ଚାତର,
ସେହି ପିଲାଟିକି ଗୁରୁ କରିଥାନ୍ତି ଆଦର ।

ସମସ୍ତଙ୍କୁ ମଣଇ ସେ ନିଜ ଭାଇ ସମାନ,
ପର ଦୁଃଖ ଦେଖି ତା'ର କାନ୍ଦିଉଠେ ପରାଣ ।

ବାଟବଣା ମଣିଷକୁ ବାଟ ଦିଏ ବତାଇ,
ଛୋଟା, କଣା, କୁଜା ଦେଖି ନହୁଏ ସେ ଖତାଇ ।

ଭାଇବନ୍ଧୁ ପରି ମଣେ ଦେଶବାସୀମାନଙ୍କୁ,
ପରନିନ୍ଦା ପାଇଁ କେବେ ନପତାଏ କାନକୁ ।

ଓଗାଳଇ ନାହିଁ ବାଟ ଛିଡାହୋଇ ମଝିରେ,
ଗପିବାକୁ କଥା ଖାଲି କେବେ କାହା ସାଥିରେ ।

ଭଲ ପିଲା ଗୁଣମାନ ବହି ପଢ଼ି ବୁଝଇ,
ବଡ଼ ହେଲେ ସବୁଠାରେ ସେହି ହେବ ବିଜୟୀ ।

ଆନଠାରୁ ନିଜେ ଯେଉଁ ବ୍ୟବହାର ଲୋଡ଼ଇ,
ସେହିପରି ବ୍ୟବହାର ଆନ ପ୍ରତି କରଇ ।

ସେ ଅଟଇ ଭଲ ପିଲା ଗୁଣ ତା'ର ମହତ,
ତା'ପରି ତୁମ ଭିତରେ କିଏ ଅଛ କହତ ?

—

# ଅମାନିଆ ପିଲା

ବଡ଼ ଅମାନିଆ ମାଧବ ବୋଲ ନଶୁଣେ ଜମା,
ନ ମାନଇ ଖରା ବରଷା ବଣ ପାହାଡ଼ ଖମା।

ଦିନେ ମୁହଁ-ସଞ୍ଜ ବେଳରେ ମେଘ ଆସିଲା ଘୋଟି,
କେତେ ଗଛଲତା ପବନେ ତଳେ ପଡ଼ିଲା ଲୋଟି।

ମାଧବକୁ ଡାକି ତାହାର ମାଆ କଲେ ଆକଟ,
''କାହିଁ ନଯିବୁ ତୁ ବାବୁରେ, ଛାଡ଼ି ଘର ନିକଟ।''

କହି ହାଣ୍ଡିଶାଳେ ପଶିଲେ ବେଗେ ରାନ୍ଧିବା ପାଇଁ,
ସଅଳ ସଅଳ ପୁଅକୁ ଭାତ ଦେବେ ଖୁଆଇ।

ଚାହୁଁ ଚାହୁଁ ମାଡ଼ିଆସିଲା ମେଘ କରି ଗର୍ଜନ,
ପବନ ସଂଗତେ ଉଠିଲା ଡେଇଁ ମାଧବ ମନ।

ଘରୁ ଆସି ଦେଖେ ଦୁଆର, ପିଣ୍ଡା, ଅଗଣା, ଓଳି,
ପଡୁଅଛି କୁଆପଥର କିବା ପାଚିଲା କୋଳି।

ଭୁଲିଲା ମାଆଙ୍କ ଆକଟ, ଚାରିଆଡ଼କୁ ଚାହିଁ।
ମନା କରିବାକୁ ଦେଖିଲା କେହି କୁଆଡ଼େ ନାହିଁ।

ନପାରିଲା ଲୋଭ ସମ୍ଭାଳି ହେଲା ଦୁଆରେ ଠିଆ,
ହାଣ୍ଡିଶାଳେ ମାଆ ଧରାଉ ଥିଲେ ଚୁଲିରେ ନିଆଁ।

ଗୋଟାଇଲା କୁଆପଥର ନେଇ ରଖିଲା ମୁଖେ,
ଆହା କେଡ଼େ ଥଣ୍ଡା ଲାଗଇ – ମନ ପୂରିଲା ସୁଖେ।

ଠକ ଠକ କୁଆପଥର      ପଡ଼େ ମୁଣ୍ଡ ଉପରେ,
ଡିଡିଯାଏ ଦେହ ଗୋଟାକ      ସେ କି ତାହାକୁ ଡରେ ?

ଦାଣ୍ଡରୁ ଆସିବେ ବାପା ଯେ !      ଦେଲା କବାଟ କିଳି,
ଗୋଟା ଗୋଟା କୁଆପଥର      ବେଗେ ପକାଏ ଗିଳି ।



ହାଣ୍ଡିଶାଳୁଁ ମାଆ ବାହାରି      ଦେଖି କରିଲେ ପାଟି,
ଚମକି ପଡ଼ିଲେ ପୁଅର      ଏଇ ଦୁଷ୍ଟାମି ଦେଖି ।

''କିକଲୁ କିକଲୁ ମୋତେରେ !      ଦେହେ ଫୁଟୁଛି ଖଇ,
ଆସନ୍ତୁ କହିବି ବାପାଙ୍କୁ      ତୋର କାଢ଼ିବେ ଛଇ ।''

କିଛି ନଜାଣିଲା ପରାଏ      ଆସେ ମାଧବ ଧାଇଁ,
ପୋଛିପାଛି ମାଆ ଶୁଖିଲା –      ଲୁଗା ଦେଲେ ପିନ୍ଧାଇ ।

ଜର କଫ ତାକୁ ଘୋଟିଲା ପଡ଼ିରହିଲା ଶେଯେ
ମାସେ ଯାଏ ଶୋଇ ରହିଲା, ଉଠି ନପାରେ ସେ ଯେ ।

ନ ବୁଝିଲା କେବେ ସକାଳ ହୁଏ, ବୁଡ଼ଇ ବେଳ,
ହାତଗୋଡ଼ ଚାଳି ନୁହେଁତ କିବା ଖେଳିବ ଖେଳ ?

ମୁଣ୍ଡ ଧମକଇ ଅଧିକ ପାଟି ଲାଗଇ ପିତା,
ଔଷଧ ଖୁଆଇ ତାହାକୁ ଥକି ଗଲେଣି ମାତା ।

ଭଲ ହୋଇ ଯେବେ ମାଧବ ହେଲା ଦୁଆରେ ଠିଆ,
ଭୁଲି ନପାରିଲା କଦାପି କୁଆପଥର ଖିଆ ।

ପୁଣି ଯେବେ ଆସେ ବରଷା, ମନେ ଭାବଇ ଚାହିଁ,
ଥରେ ତିନ୍ତିଲାରୁ ଗୋଟିଏ ମାସ ସେ ଖେଳିନାହିଁ ।

## ମହୁମାଛି ଓ ବାଳକ

ଏ ଫୁଲରୁ ଉଡ଼ି ସେ ଫୁଲେ ବସି
ଗୋଟାଉ ଥାଉ ତୁ ମହୁ,
ଗୁଣୁ ଗୁଣୁ କରି ମହୁମାଛିଟି
କହଲୋ କି କଥା କହୁ ।

ଦିନ ଯାକ ଖାଲି କାମରେ ମନ
ତୋହପରି କିଏ ହେବ,
ଏତେ ମିଠା ମହୁ ଗୋଟାଇ ଆଣି
ପର ପାଇଁ କିଏ ଦେବ ?

ମୋହ ପାଖେ ଅଛି ଗୋଟିଏ ଚିଜ
ମହୁଠାରୁ ବେଶୀ ମିଠା,
ଖାଇଲେ ପାଟିରୁ ଛାଡ଼ିବ ନାହିଁ
ବଡ଼ ସୁଆଦିଆ ପିଠା ।



ପିଠା ନୁହେଁ ତା'ର ନାମଟି ପାଠ
ବହିରୁ ସାଉଁଟେ ମୁହିଁ,
ବହି ମୋର ଫୁଲ ପାଠଟି ମହୁ,
କାଢ଼ଇ ତାହାକୁ ଦୁହିଁ ।

ସେ ପାଠ-ମହୁକୁ ମୋ ମନ-ଫେଣାରେ,
ଯତନେ ରଖଇ ସଞ୍ଚି,
ତୋହ ପରି ଦିନେ ବାଣ୍ଟିବି ବୋଲି
ହୃଦୟେ ପକାଇ କଞ୍ଚି ।

ତୋହ ପରି ମୋର ନାହିଁତ ବେଳ
କାମରେ ଲାଗିଛି ନିତି,
ଅକାରଣେ କେବେ ସମୟ ମୋର
ନଦିଏ ଯିବାକୁ ବିତି ।

## ପଶୁପକ୍ଷୀ ଓ ବାଦୁଡ଼ି

ମେଣ୍ଟ ବାନ୍ଧି ପଶୁମାନେ ଦିନେ କଲେ ବିଚାର
ଆକାଶର ପକ୍ଷୀମାନେ ଆମ ପାଖେ କି ଛାର ।

ନ ଛାଡ଼ିବୁଁ ତାଙ୍କୁ ଆମେ ବସିବାକୁ ମାଟିରେ,
ବସା ବାନ୍ଧି ରହିବାକୁ ଗଛେ କୁଟା କାଠିରେ ।

ପଶୁଙ୍କର କଥା ଶୁଣି ରାଗିଗଲେ ଚଢ଼େଇ,
ଡାକିଲେ, 'ରେ ପଶୁମାନେ, କର ଆସି ଲଢ଼େଇ' ।

ବାହାରିଲେ ପଶୁଥାଟ ନଖ ଦାନ୍ତ ପଜାଇ,
ଚଢ଼େଇ ଆସିଲେ ତାଙ୍କ ନଖ ଥଣ୍ଟ ମଜାଇ ।

ପଶୁ ଗରଜନ ସଂଗେ ଚଢ଼େଇଙ୍କ ଶବଦ,
ଶୁଣାଗଲା ଭୟଙ୍କର କାନ ହେଲା ସ୍ତବ୍ଧ ।

ଲାଗିଗଲା ମହା ଯୁଦ୍ଧ ପଶୁ ପକ୍ଷୀ ଭିତରେ,
ଡରକୁଳା ବାଦୁଡ଼ିଟା ଥରିଗଲା ଭୟରେ ।

ପକ୍ଷୀଭଳି ଉଡ଼ିପାରେ ଥଣ୍ଟ ନାହିଁ ତାହାର,
ପଶୁଙ୍କ ଉପରେ କାହୁଁ ବସାଇବ ପାହାର ?

ପଶୁଙ୍କ ପାଖରେ ତେଣୁ ଯାଇ କଲା ଗୁହାରି,
"ତୁମପରି ଦେହେ ମୋର ଲୋମ ଅଛି ବାହାରି।

ତୁମପରି ଛୁଆ ମୁହିଁ ଜନମତ କରଇଁ
ନିଜ ଦୁଧ ଦେଇ ତାକୁ ନିଜ କୋଳେ ଧରଇଁ।



ଦିଏ ନାହିଁ ଅଣ୍ଡାମୁହିଁ ପକ୍ଷୀ ଜାତି ସମାନ,
ପକ୍ଷୀ ହେବାପାଇଁ ତେଣୁ ନାହିଁ ତିଳେ ମୋ ମନ।"

ଏହା କହି ମିଶିଗଲା ପଶୁ ଦଳ ସାଥିରେ,
ବୋଇଲା, 'ମୁଁ ଆଜିଠାରୁ ହେଲି ପଶୁ ଜାତିରେ।'

ଯୁଝି ଯୁଝି ଦୁଇ ଦଳ ବଳ ସିନା ସରିଲା,
ହାର ଜିଣା କଥା କେଉଁ ଜଣା ନାହିଁ ପଡ଼ିଲା ।

ମିଶିଗଲେ ଦୁଇଦଳ କମିଗଲା ଚହଳ,
ପଶୁ ପକ୍ଷୀ ଲଢ଼େଇଟା ସରିଗଲା ସହଳ ।

ଉଡ଼ିଲା ବାଦୁଡ଼ି ଯେବେ ଚଢ଼େଇଙ୍କ ଆଗରେ,
ମାରିବାକୁ ଗୋଡ଼ାଇଲେ ସବୁ ପକ୍ଷୀ ରାଗରେ ।

ସେହି ଦିନୁଁ ସଞ୍ଜ ହେଲେ ବାହାରଇ ବାଦୁଡ଼ି,
ଆସନ୍ତି ଚଢ଼େଇ ଯେବେ ଯେଝା ଘରେ ବାହୁଡ଼ି ।

ଲୁଚି ରହେ ଚଢ଼େଇଙ୍କୁ ଡର ଭୟ ଲାଜରେ,
ଗହଳିଆ ଗଛ ଅବା ଅନ୍ଧାରିଆ ଥାନରେ ।

ନିଜ ମେଣ୍ଟ ଛାଡ଼ି ଯେହୁ ପର ସଂଗେ ଜୁଟଇ,
ବାଦୁଡ଼ି ସମାନ ସେହୁ ଜୀବନଟା କାଟଇ ।

ସବୁଠାରୁ ତଡ଼ା ଖାଇ ହୁଏ ସେହୁ ନିଆରା,
ଲାଂଛନା ସେ ଭୋଗିଥାଏ ଜୀବନ ସାରା ।

## 'ଉଠରେ ପୁତା ଉଠ'

''ସେରକ ପୂରିଲା ମାଣକ ପୂରିଲା
ଉଠରେ ଉଠରେ ପୁତା''
ତରୁଡାଳେ ବସି ବାହୁନି ବାହୁନି
କାନ୍ଦଇ କପୋତ ମାତା ।

କୁଆ କପୋତଙ୍କ ମାଆ ଦୁହେଁ ଦିନେ
ଡାକି ନିଜ ନିଜ ପିଲା,
ଯେ ଯାହା ପିଲାକୁ ଚାଉଳ କରିବା
ପାଇଁ ମାଣେ ଧାନ ଦେଲା।

କପୋତ ଶାବକଠାରୁ କୁଆପିଲା
ଚଲାକ ଚତୁର ବେଶୀ,
ଆଗକରି ମାଣ ତଳେ ଖୁଦ କୁଣ୍ଡା
ଲୁଚାଇ ରଖିଲା ହସି।

ତାହାରି ଉପରେ ଥୋଇଲା ଚାଉଳ
ପୂରିଗଲା ମାଣ ତା'ର,
ଛଳ ନଜାଣଇ କପୋତ ଛୁଆଟି
ନ ବୁଝେ ଏତେ ବେଭାର।

ଅଲଗା ରଖିଲା ଖୁଦ କୁଣ୍ଡା ଯହୁଁ,
ଚାଉଳ ମାଣକ ଅଧା,
ଯେ ଯାହାର ମାଆ ପାଶେ ଦୁଇ ଛୁଆ
ଥୋଇ ଦେଲେ ନେଇ ସିଧା।

ଦେଖିଲା କପୋତୀ ମାଣ ତା'ର ଅଧା
କୁଆ-ଛୁଆ ମାଣ ଭରା,
ରାଗି ଯାଇ ନିଜ ଛୁଆକୁ ତକ୍ଷଣେ
ମାରି କଲା ଦରମରା।

କପୋତ ଶାବକ ପଡ଼ିଗଲା ତଳେ
ଛାଡ଼ିଗଲା ତା'ର ପ୍ରାଣ

କୁଆର ଜନନୀ ଖାଲି କରି ଦେଖେ
ତହୁଁ ଆପଣାର ମାଣ।

ତଳୁ ବାହାରିଲା ଖୁଦ କୁଣ୍ଡା ଦେଖି
କପୋତୀ ବିକଳ ମନ,
ନିଜ ଖୁଦ କୁଣ୍ଡା ପୂରାଇ ମାପିଲା
ପୂରିଗଲା ନିଜ ମାଣ।



ବିକଳେ ବାହୁନି କାନ୍ଦିଲା, 'କିକଲି'
ବୋଲି କୋଡ଼ି ହେଲା ମଥା,
'ମାଣକ ପୂରିଲା ସେରକ ପୂରିଲା
ଉଠରେ ଉଠରେ ପୁତା।'

ସେହି ଦିନୁଁ ବନ ପରବତ କୋଳେ
ରୋଦନ କରଇ ଦୁଃଖେ,
ନବୁଝି ନଜାଣି ରାଗିଥିଲା ବୋଲି
ବେଦନା ବହିଲା ବୁକେ ।

କ୍ରୋଧ ଆଣେ ଦୁଃଖ ଜୀବନେ ବହୁତ
ଶିଖିଲୁଁ ଆମେ ସେ କଥା,
କ୍ରୋଧ କରି ସିନା ବାହୁନେ କପୋତୀ
''ଉଠରେ ଉଠରେ ପୁତା ।''

## ଶାରି ଓ ବିଲେଇ

ରମା ପୋଷିଥାଏ ବିଲେଇ ଗୋଟିଏ
ନାମ ଦେଇଥାଏ 'ନେତ',
''ଆସ୍ ପୁସ୍'' ବୋଲି ଡାକିଦେଲେ ଥରେ
ଦଉଡ଼ି ଆସଇ ସେ ତ ।

ଲାଙ୍ଗୁଡ଼କୁ ଟେକି ଘୁଡୁଘୁଡୁ ହୋଇ
ଦେହରେ ହୁଅଇ ଘଷି,
ରମା ନଖାଉଣୁ ନଛୁଏଁ ଭାତକୁ
ଚାହିଁ ରହିଥାଏ ବସି ।

ରମା ଖାଉଥିଲେ 'ମେଉଁ ମେଉଁ' ହୋଇ
ମୁହଁକୁ ରହଇ ଚାହିଁ,
ନରୁଚେ ତାହାକୁ ଆଉ କିଛି ଚିଜ
ଦୁଧ ମାଛ ଯେବେ ନାହିଁ ।

ରମା ବଡ଼ ଭାଇ ରାମ ପୋଷିଥାଏ
ଗୋଟିଏ ସୁନ୍ଦର ଶାରି,
ଦେହଟି ତାହାର ଚିକ୍‌କଣ କାଳିଆ
ଥଣ୍ଟ ଗୋଟି ନାଲି ଭାରି ।

''ରାମ ରମା'' ଡାକ ଶିଖିଲା ଶାରିଟି
ପଞ୍ଜୁରି ଭିତରେ ରହି,
କେତେଥର ଉଡ଼ିଯାଇ ଗଛେ ବସେ
''ରାମ ରମା'' ଡାକେ ତହିଁ ।

ଆହାର ଟିକିଏ ରଖିଦେଲେ ପୁଣି
ପଞ୍ଜୁରିକୁ ଆସେ ଫେରି,
ସବୁବେଳେ ସେ ତ ରାମର କଥାକୁ,
ରହିଥାଏ କାନ ଡେରି ।

ଶାରି ରୂପ ଦେଖି ନେତର ଜିଭରୁ
ବୋହି ପଡେ ଲାଳ ଧାର,
ଛକି ଛକି ଥାଏ ହାବୋଡ଼େ ପଡ଼ିଲେ
କରିବ ଦିନେ ଶିକାର ।

ଯୋଗକୁ ଶାରିଟି ପଞ୍ଜୁରିରୁ ଫିଟି
ବସିଥିଲା ଦିନେ ତଳେ,
କାହୁଁ ଖେପାମାରି ଡେଇଁଲା ବିଲେଇ
ଧରିଲା ଶାରିକି ବଳେ ।

ଛଟପଟ ହୋଇ ରହିଲା ଶାରିଟି
ନପାରିଲା ଉଠି ସିନା

ମୁଖରୁ ବିକଳେ ବାହାରି ଆସିଲା
ସେହି ଡାକ "ରାମ ରମା" ।

କାବାହେଲା ନେତ ଶୁଣି ସେଇ ଡାକ
ଦେହ ହେଲା ତା'ର କାଠ,
ଏ ନୁହେଁ ଚଢ଼େଇ ମଣିଷ ପରି ତ
କହୁଛି ମଣିଷ ପାଠ !



ବିଲେଇ ଶାରିକୁ ଛାଡ଼ି ମେଉଁ ରାବି
ଚାଟିଲା ଦେହକୁ ତା'ର,
ଲାଙ୍ଗୁଡ଼ ହଲାଇ ନିଜ ଦୋଷ ଅବା
ମାଗିନେଲା ବାରବାର ।

ଦୁଇପଦ କଥା ଶିଖିଥିଲା ବୋଲି
ଜୀବନ ପାଇଲା ଶାରି

ସାଙ୍ଗ ହୋଇଗଲା ବିରାଡ଼ି ତାହାର
ବିପଦୁ ଗଲା ଉବୁରି।

ପାଠ ପଢ଼ିଥିଲେ ଭଗାରି ତୁମର
କରି ନପାରିବ ଖୁଣ,
ଯହିଁ ଗଲେ ତହିଁ ଆଦର ମିଳଇ
ପାଠର ଏତକ ଗୁଣ।

## ଯେସାକୁ ତେସା

ନଈ ସେ ପାରିରେ ନାଲି ଟହଟହ
କେତେ ବରଫଳ ଆଖୁ,
ଏ ପାରିରେ ରହି ବିଲୁଆ ପାଟିରୁ
ଲାଳ ବୁହେ ଖାଇବାକୁ।

ଓଟକୁ ଡାକି ସେ କହିଲା, "ସାଙ୍ଗହେ,
ନଈ ଆରପାରି ଚାଲ,
ଏ ପାଖରେ କିଛି ନମିଳେ, ସେଠାରେ
ଖାଇବା ଅସଲ ମାଲ।

ଦେଖ ସେ ପାରିରେ କିପରି ବଢ଼ିଛି
ନାଲିଆ କନ୍ତାରି ଆଖୁ";
ବେକ ଟେକି ଓଟ ଚାହିଁଲାକ୍ଷଣି ତା'
ପାଟି ହେଲା ପାକୁପାକୁ।

ଲମ୍ବା ଖୋଜମାନ ବଢ଼ାଇ ହାଜର
ହେଲା ବେଗେ ନଈକୂଳେ,

ଚତୁର ବିଲୁଆ ଆନନ୍ଦେ ବସିଲା
ଯାଇ ଓଟ ଉଚ୍ଚ ଚୂଳେ ।

ନଈ ପାର ହୋଇ ଆରକୂଳେ ଯହୁଁ
ପହଞ୍ଚିଲା ଯାଇ ଓଟ,
ଡେଇଁ ତା' ପିଠିରୁ ଆଖୁ କିଆରିକୁ
ବିଲୁଆ ଦେଲା ଚମ୍ପଟ ।

ମସ-ମସ କରି ଚୋବାଇଲା ଆଖୁ
ଟାଉଟାଉ ବୁଲେ ପାଟି
ଓଟଖାଏ ଧୀରେ ଜାଣିନାହିଁ ସେତ
ବିଲୁଆ ଏଡ଼େ କପଟୀ ।

ପେଟେ ଆଖୁ ଖାଇ ଛାଡ଼ିଲା ବିଲୁଆ
''ହୁକେ ହୋ, ହୁକେ ହୋ'' ରଡ଼ି,
ତାହା ଶୁଣି ଲୋକେ ଠେଙ୍ଗା ବାଡ଼ି ଘେନି
ଆସିଲେ ଦେବାକୁ ତଡ଼ି ।

ବୁଦା ଉହାଡ଼ରେ ଲୁଚିଲା ବିଲୁଆ
ଓଟ ଛିଡ଼ା ହେଲା ଡେଙ୍ଗା,
ସେଥିପାଇଁ ତାକୁ ସହିବାକୁ ହେଲା
ଗାଆଁ ଲୋକଙ୍କର ଠେଙ୍ଗା ।

ଫେରିବା ବେଳରେ ପଚାରଇ ଓଟ
ହଲାଇ ଠେଙ୍ଗଣି ହାଡ଼,
''କହ ଦେଖି ଭାଇ, ତୁ ଖାଇଲୁ ଆଖୁ
ମୁଁ ଖାଇଲି କିପାଁ ମାଡ଼ ?''

"କିପରି ଜାଣିବି ତୋତେ ସେ ମାରିବେ ?"-
ବିଲୁଆ ଭଲେଇହୁଏ,
ଓଟ ବୋଲେ, "ତୋର ପେଟରେ କଥାଏ,
କଥାଏ କହୁ ତୁ ମୁହେଁ ।



ନିଜେ ଖାଇ ସାରି ବୁଦାମୂଳେ ଲୁଚି
ଭୁକିଲୁ କାହିଁକି ଭଲା ?
ତାହା ନୋହିଥିଲେ ମାଡ଼ଖାଇ ମୁହିଁ
ନହୁଅନ୍ତି ଦରମରା ।"

ବିଲୁଆ ବୋଲଇ, "ଖାଇସାରି ମୋର

ଅଭ୍ୟାସ କରିବା ରଢ଼ି।''
ଓଟ କହେ, ''ଖାଇସାରି ମୋ ଅଭ୍ୟାସ
ଦଣ୍ଡେ ଯିବା ତଳେ ଗଡ଼ି।''



କହୁଁ କହୁଁ ଓଟ ବୁଡ଼ିଗଲା ନଈ
ମଝିରେ ପାଣି ଭିତରେ,
ଚୂଳୁଁ ଖସି ପ୍ରାଣ ଛାଡ଼ିଲା ବିଲୁଆ
ଭାସିଯାଇ ନଦୀ ନୀରେ।

ସାଧୁ ଲୋକ ସଂଗେ ସାଧୁ ବ୍ୟବହାର
ଶଠକୁ ଶଠତା ଭଲ,
ଦୁଷ୍ଟ ଜନ କଥା ଶୁଣିଲେ ଜୀବନ
ହୁଏ କେତେ କଲବଲ।

—

## ଚଣ୍ଡାଳଘରେ ଲକ୍ଷ୍ମୀ

ଲୋହିତ ବରଣ ପରାଚୀ ତୋରଣ
ଫିଟାଇ ଚାହିଁଲେ ରବି,
ପ୍ରଭାତୀ ତାରକା ଲୁଚିଲା ଲାଜରେ
ରୂପେ ପରାଜୟ ଲଭି।

ପ୍ରଭାତ କିରଣେ ହସିଲା ଧରଣୀ
ପକ୍ଷୀକଣ୍ଠୁ ଝରେ ଗୀତ,
ଧାନଭରା କ୍ଷେତେ ଖେଳାଏ ଲହରୀ
ଶୀତଳ ମନ୍ଦ ମରୁତ।

ମାର୍ଗଶୀରମାସ ଆଦ୍ୟ ଗୁରୁବାର
ମହାଲକ୍ଷ୍ମୀ ଆଗମନ,
ଘର ଦାଣ୍ଡ ଲିପି ଚିତା ଝୋଟି ଦେଲେ
ଗୃହର ଲଳନାଗଣ।

ନୀଳାଚଳ ଧାମେ ବଡ଼ ଦେଉଳର
ଫିଟିଗଲା ସିଂହଦ୍ୱାର,
ସହଚରୀ ସଂଗେ ଲକ୍ଷ୍ମୀ ଠାକୁରାଣୀ
ମନ୍ଦିରୁଁ ହେଲେ ବାହାର।

ଦେଖନ୍ତି କମଳା ଆବାସେ ଆବାସେ
ଧନୀର ଦୁଲାଳୀ କାହିଁ

ଘଳପ କରୁଛି ପଲଙ୍କ ଉପରେ
ଅଳସ ବିଳାସେ ଶୋଇ ।

ମୁଖ ନପଖାଳି ଜମିଦାର-ବାଳୀ
ଆଉ କେଉଁ ଘରେ ବସି,
ଦାସ ଦାସୀ ମେଳେ ସୁବାସିତ ପାନ
ଚୋବାଉଛି ହସିହସି ।

ଶଯ୍ୟା ତେଜି ଅବା କେହି କଳିହୁଡ଼ୀ
କଳିଆ ଦିଅଇ ଝାଡ଼ି,
ପଡ଼ୋଶୀକୁ ଚାହିଁ ବଖାଣେ କୁଭାଷା
ଅଣ୍ଟାରେ କାନିକୁ ଭିଡ଼ି ।

ଘୃଣାଭରେ ଦେବୀ ରଖିବାକୁ ପାଦ
ନ ଦେଖିଲେ କାହିଁ ଥାନ,
ସବୁ ଘର ଛାଡ଼ି ଚଣ୍ଡାଳ ପଲ୍ଲୀକୁ
ଚଞ୍ଚଳା କଲେ ଗମନ ।

କୁଟୀର ଗୋଟିଏ ଦିଶେ ନିରିମଳ
ଗୋମୟ, କୁସୁମେ ଶୋଭା,
ପିଠଉ ମୁରୁଜେ ଶ୍ୱେତ ପଦ୍ମ ଚିତ୍ର
ଅଙ୍କିତ ସୁନ୍ଦର କିବା ।

କମଳା ଭକତ ଶ୍ରୀୟା ଚାଣ୍ଡାଳୁଣୀ
ନିବସଇ ସେଇ ଘରେ,
ପଦ୍ମଫୁଲ ଦେଖି ପଦ୍ମାଳୟା ପାଦ
ରଖିଲେ ତଥି ଉପରେ ।

ଚଣ୍ଡାଳୁଣୀ ପ୍ରତି ପରସନ୍ନ ଅତି
ହୋଇ କହିଲେ ବଚନ,
'ଧନ୍ୟ ତୁ ଶ୍ରୀୟାଗୋ ! ଯାହା ଇଚ୍ଛା ମାଗ
କରିବି ସେ ବର ଦାନ।'



ଶ୍ରୀୟା ଯୋଡ଼ି ପାଣି ବୋଲେ ସାଆନ୍ତାଣୀ
କରୁଅଛ ଦୟା ଯେବେ
ଧନ ଜନେ ପୂରୁ କୁଟୀର ମୋହର
ଅମର ହୁଏ ମୁଁ ଭବେ।

''ଅତୁଳ ସଂପଦ ଲଭିବୁଲୋ ଶ୍ରୀୟା
ସନ୍ତାନ ସନ୍ତତି ବହୁ'',

କହିଲେ କମଳା, "ତୋ ଅମର ନାମ
ଯୁଗେ ଯୁଗେ ଲେଖା ରହୁ"।

ପ୍ରଣମିଲା ଶ୍ରୀୟା ଦେବୀଙ୍କ ଚରଣେ
ଭକତି-କୁସୁମ ତୋଳି
ସନ୍ତୋଷ ହୃଦୟେ ତହୁଁ ଠାକୁରାଣୀ
ସିଂହଦ୍ୱାରେ ଗଲେ ଚଳି।

## ଉଈ ଓ ମହୁମାଛି

ମଧୁମକ୍ଷିକାକୁ ଉଈ କହେ, "କେଡ଼େ ମୂର୍ଖ ତୁହି,
ଅକାରଣେ କରୁ କିମ୍ପା ରୋଳ,
ଜାଣିପାରି ତୋ ଶବଦୁଁ ଅପରେ ହରନ୍ତି ମଧୁ,
ଫୁଲବାସେ ରହୁ ତୁହି ଭୋଳ।

ଦେଖ ମୋତେ ନୀରବରେ କିଭଳି ସାଧନା କରେ,
ରଚେ ଘର କରି ନିରାପଦ,
ଗୀତ ଗାଇ ଫୁଲେ ଫୁଲୁଁ କହ କିପାଁ ଉଡ଼ିବୁଲୁ,
ଗୁଣୁ ଗୁଣୁ କରୁ ତୁ ଶବଦ ?"

ଉଡ଼ି ବଲମୀକ ପାଶେ ହସି ମହୁମାଛି ଭାଷେ,
"ପର ହିତ ପାଇଁ ମୋ ସଞ୍ଚୟ,
ହରଷେ ମୁଁ ଗାଏଁ ଗୀତ, ସରସ ସଦା ମୋ ଚିତ୍ତ,
ନଗଣଇଁ ତିଳେ ଦୁଃଖ ଭୟ।

ସ୍ୱାର୍ଥ ଲାଗି ସଦା ଅନ୍ଧ        କରୁ କାମ ଅତି ମନ୍ଦ,
ବନ୍ଧୁ ଧନ କରୁ ଛାରଖାର,
ସୁନ୍ଦର ବସନ କାଟି        ଦିନକେ କରୁ ତୁ ମାଟି,
କେତେ ଗ୍ରନ୍ଥ ହୁଏ ତୋ ଆହାର।

ଫୁଲ ମୋର ପ୍ରିୟ ବନ୍ଧୁ        ହସି ଯାଚିଦିଏ ମଧୁ,
କହେ, ଯେତେ ଘେନି ଯାଅ ରସ,
ବାଣ୍ଟିଦେଇ ପ୍ରୀତିସୁଧା        ସୁଖୀକର ଏ ବସୁଧା,
ଗାଅ ତୁମେ, ବିତରେଁ ମୁଁ ହସ।''

ବହିନିଏଁ ରେଣୁ ରସ,        ଫୁଲର ନଥାଏ ରୋଷ
କାନେ କାନେ ଗାଏ ତା'ର ଗୀତ,
କୁସୁମ ସଂଗୀତ ଭରା        ଅଛି ସୁଖମୟ ଧରା
ଆନନ୍ଦରେ କରେଁ ପର ହିତ।''

ଜଗତର ହିତ ଲାଗି        ସଦା ମୁହିଁ ଅନୁରାଗୀ,
ପାଏଁ ତେଣୁ ସବୁରି ଆଦର,
ତୁହି ମନ୍ଦଗୁଣ ଯୋଗୁଁ        କେତେ ଦୁଃଖ କଷ୍ଟ ଭୋଗୁ
ଶେଷେ ଘଟେ ନିଧନ ତୋହର।''

—